# ସାହିତ୍ୟ ସାଧକ ଆର୍ତ୍ତବଲ୍ଲଭ

ଲେଖକ

ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି

ପ୍ରଫେସର ଆର୍ତ୍ତବଲ୍ଲଭ ସ୍ମୃତି ପରିଷଦ

# ସାହିତ୍ୟ ସାଧକ ଆର୍ତ୍ତବଲ୍ଲଭ

ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି

SAHITYA SADHAKA ARTABALLAVA

*By Dr. Bichitrananda Mohanty.*

A short life sketch of Prof. Artaballava Mohanty
who pioneered the study of classical Oriya literature

*ପ୍ରଫେସର ଆର୍ତ୍ତବଲ୍ଲଭ ସ୍ମୃତି ପରିଷଦ, ନିର୍ମଳ କୁଟୀର, ତଳତେଲେଙ୍ଗା ବଜାର,*
*କଟକ–୭୫୩୦୦୯ଙ୍କ ଦ୍ୱାରା ପ୍ରକାଶିତ ଓ ମୁଦ୍ରିତ*

ମୂଲ୍ୟ – ୫.୦୦ ଟଙ୍କା ମାତ୍ର

## ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି

ଜନ୍ମ: ୧୧ ଅଗଷ୍ଟ, ୧୮୮୭

ମୃତ୍ୟୁ: ୩୦ ସେପ୍ଟେମ୍ବର, ୧୯୬୩

ପିତା: ବାନାମ୍ବର ମହାନ୍ତି, ମାତା: ଉମାଦେଈ, ପତ୍ନୀ: ନୀଳମଣି, ପୁତ୍ର: ରେବତୀ ବଲ୍ଲଭ, ହୃଦୟବଲ୍ଲଭ, ଅମରବଲ୍ଲଭ, ଜାନକୀବଲ୍ଲଭ, କନ୍ୟା: ବୀଣାପାଣି, ଭଣଜା: ବିନୋଦ କାନୁନ୍‌ଗୋ

କର୍ମକ୍ଷେତ୍ର: ରେଭେନ୍ସା କଲେଜ, କଟକ–୧୯୧୪–୪୪; ସମ୍ମାନପ୍ରାପ୍ତି: ରାୟ ସାହେବ ୧୯୩୨, ରାୟ ବାହାଦୂର ୧୯୪୩, ଡି.ଲିଟ୍ (ଉତ୍କଳ ବିଶ୍ୱବିଦ୍ୟାଳୟ) ୧୯୫୫, ପଦ୍ମଶ୍ରୀ ୧୯୫୮, ବିଦ୍ୟାଭୂଷଣ–ଆନ୍ଧ୍ର ଗବେଷଣା ସମିତି ।

ଅବୈତନିକ ସଂସ୍କୃତ ଅଧ୍ୟାପକ–ଉତ୍କଳ ବିଶ୍ୱବିଦ୍ୟାଳୟ ସିନେଟ୍,ସିଣ୍ଡିକେଟ୍, ଏକାଡେମିକ କାଉନସିଲ ସଭ୍ୟ–ପାଟନା ଓ ଉତ୍କଳ ବିଶ୍ୱବିଦ୍ୟାଳୟ, କଳାବିଭାଗ 'ଡିନ୍'

**ପ୍ରାଚୀ ସମିତି ପ୍ରତିଷ୍ଠା: ମାର୍ଚ୍ଚ ୧୯୨୬**

ସହଯୋଗୀଗଣ– ଗୁରୁଚରଣ ମହାନ୍ତି, କରୁଣାକର କର, ବିଚ୍ଛନ୍ଦ ଚରଣ ପଟ୍ଟନାୟକ, ଲକ୍ଷ୍ମୀକାନ୍ତ ଚୌଧୁରୀ, ଭୀମ ରାଉତ, କୁଳମଣି ଦାସ, ଆକୁଳି ମିଶ୍ର, ସୁଧାକର ପଟ୍ଟନାୟକ, ଘନଶ୍ୟାମ ଦାସ, ଜଗଦାନନ୍ଦ ମହାନ୍ତି, ବିନୋଦ କାନୁନ୍‌ଗୋ ଆଦି ।

ପ୍ରାଚୀ ସମିତି ପ୍ରତିଷ୍ଠାର କାରଣ: (୧) ପ୍ରାଚୀନ ପୋଥି ପ୍ରକାଶ ପାଇଁ ଇଷ୍ଟଦେବ ଗୋବିନ୍ଦଜୀଉଙ୍କ ସ୍ୱପ୍ନାଦେଶ, (୨) ଅଣଓଡ଼ିଆ ସମାଲୋଚକଙ୍କ ଓଡ଼ିଆ ଭାଷା ଓ କବିଙ୍କ ପ୍ରତି ତାଚ୍ଛଲ୍ୟ ଓ କଟୂ ମନ୍ତବ୍ୟ (୩) ଓଡ଼ିଶାର ସଂସ୍କୃତ ଲେଖକଙ୍କ ଗ୍ରନ୍ଥମାନ ବମ୍ବେ, କଲିକତା, ବିଜୟ ନଗରମ୍‌ରୁ ପ୍ରକାଶ ପାଇଥିବାରୁ ଓଡ଼ିଶାରେ ବିଦ୍ୱାନ ନାହାନ୍ତି–ଏହି ଆକ୍ଷେପ ପାଇଁ ଆହ୍ୱାନ (୪) ଓଡ଼ିଆ ଅଭିଲେଖ ପଠନ ପାଇଁ ଓଡ଼ିଶାରେ ପଣ୍ଡିତ ଅଭାବ ବୋଲି (୫) ଓଡ଼ିଆ ଜାତିର ସ୍ୱାଭିମାନ ପ୍ରଦର୍ଶନ ପାଇଁ ଏ ଜାତି ପକ୍ଷରୁ ସମାଲୋଚକମାନଙ୍କୁ ଯଥୋଚିତ ଉତ୍ତର ପ୍ରଦାନର ଆବଶ୍ୟକତା ।

**ପ୍ରାଚୀ ସମିତିର ଲକ୍ଷ୍ୟ**

ଜାତୀୟ ସାହିତ୍ୟର ଉଦ୍ଧାର ଓ ପ୍ରକାଶ, ଲୋପମୁଖୀ ପ୍ରାଚୀନ ସାହିତ୍ୟର ପ୍ରତ୍ୟେକ ଉଦ୍ଧାର କର୍ତ୍ତା ଏହାର ସଭ୍ୟ ହେବାକୁ ଯୋଗ୍ୟ । ଧନୀ ଓ ଦରିଦ୍ର ସବୁରି ପାଇଁ ଏହାର ଦ୍ୱାର ଉନ୍ମୁକ୍ତ ।

**ପ୍ରାଚୀ ସମିତି ପ୍ରକାଶିତ ପୁସ୍ତକାବଳୀ**

ରସବାରିଧି– ବୃନ୍ଦାବନ ଦାସ; ରାମବିଭା–ଅର୍ଜୁନ ଦାସ; ନିର୍ଗୁଣ ମାହାତ୍ମ୍ୟ, ବିଷ୍ଣୁ ଗର୍ଭ ପୁରାଣ–ଚୈତନ୍ୟ ଦାସ; ନଳ ଚରିତ– ମଧୁସୂଦନ ଦାସ, ଉଷାଭିଳାଷ –ଶିଶୁ ଶଙ୍କର ଦାସ; ବଟ ଅବକାଶ– ବଳରାମ ଦାସ; ବ୍ରହ୍ମଶାଙ୍କୁଳି, ଅଣାକାର ସଂହିତା, ଗୁରୁଭକ୍ତି ଗୀତା– ଅଚ୍ୟୁତାନନ୍ଦ ଦାସ; ରହସ୍ୟମଞ୍ଜରୀ– ଦେବଦୁର୍ଲଭ; ଶଶିସେଣା– ପ୍ରତାପ ରାୟ; ପ୍ରେମଭକ୍ତି ବହ୍ମଗୀତା, ଶିବ ସ୍ୱରୋଦୟ– ଯଶୋବନ୍ତ ଦାସ; ରୁକ୍ମିଣୀ ବିଭା– କାର୍ତ୍ତିକ ଦାସ, ପ୍ରେମ ପଞ୍ଚାମୃତ– ଭୂପତି ପଣ୍ଡିତ; ପରଚେ ଗୀତା– ଦ୍ୱାରିକା ଦାସ; ଶ୍ରୀ ଚୈତନ୍ୟ ଭାଗବତ– ଈଶ୍ୱର ଦାସ; ପୂର୍ଣ୍ଣତମ ଚନ୍ଦ୍ରୋଦୟ– ବୃନ୍ଦାବତୀ ଦାସୀ; ରସ କଲ୍ଲୋଳ, ଜଗମୋହନ ଛାନ୍ଦ–ଦୀନକୃଷ୍ଣ; ଲାବଣ୍ୟବତୀ–ଉପେନ୍ଦ୍ର ଭଞ୍ଜ; ଗୋପୀଭାଷା–ଦନାଇ ଦାସ; ମଥୁରାମଙ୍ଗଳ–ଭକ୍ତଚରଣ; ଚତୁରବିନୋଦ– ବ୍ରଜନାଥ ବଡଜେନା; ବିଦଗ୍ଧ ଚିନ୍ତାମଣି– ଅଭିମନ୍ୟୁ ସାମନ୍ତସିଂହାର; ଖାଡ଼ଙ୍ଗା ଭାଗବତ–ଦୀନବନ୍ଧୁ ଖାଡ଼ଙ୍ଗା; ସ୍ତୁତି ଚିନ୍ତାମଣି, ବ୍ରହ୍ମନିରୂପଣ ଗୀତା, ଶ୍ରୁତିନିଷେଧ ଗୀତା, ଭଜନମାଳା– ଭୀମଭୋଇ; ମାଦଳା ପାଞ୍ଜି, ପ୍ରାଚୀନ ଗଦ୍ୟ ପଦ୍ୟାଦର୍ଶ, ବୃହନ୍ନାରଦୀୟ ପୁରାଣ, ଲୀଳାବତୀ, ଜୟକୃଷ୍ଣ ଭଜନ; ନାରାୟଣ ଶତକ, ମହିମାଧର୍ମ ପ୍ରତିପାଦକ; ଇଂରାଜୀରେ ତ୍ରୈମାସିକ ପତ୍ରିକା–"ପ୍ରାଚୀ" ।

# ସାହିତ୍ୟପ୍ରାଣ ଓ ଓଡ଼ିଆ ଗବେଷଣାର ପିତାମହ ଆର୍ତ୍ତବଲ୍ଲଭ

ଆଜିକାଲି ପିଲାମାନେ ଆଉ ପୁରୁଣା ଓଡ଼ିଆ ସାହିତ୍ୟ ଚର୍ଚ୍ଚା ଦିଗରେ ମନ ବଳାଉ ନାହାନ୍ତି । ପୁରୁଣା ସାହିତ୍ୟ ପଢ଼ିବାକୁ ହେଲେ କଷ୍ଟ କରିବାକୁ ପଡୁଛି । କଷ୍ଟ ଶବ୍ଦ ମାନଙ୍କର ଅର୍ଥ ବୁଝି ନ ପାରିଲେ ତାହାର ଭାବ ଜାଣିହେବନି । ଭାବ ମନକୁ ନ ଘାରିଲେ ରସବୋଧ କିପରି ହେବ ? ମାତୃଭୂମି ଆଉ ମାତୃଭାଷା ପ୍ରତି ଆଦର କରିବାପାଇଁ ଆମର ଦରକାର ସାଧନା । ଏହିପରି ଜଣେ ସାଧକ ଥିଲେ ପ୍ରଫେସର ଆର୍ତ୍ତବଲ୍ଲଭ ମହାନ୍ତି ।

କଲେଜ ପଢୁଆ ପିଲା କିମ୍ବା କଲେଜରେ ପାଠ ପଢ଼ାଉଥିବା ଲୋକଙ୍କ ଭିତରେ ଆର୍ତ୍ତବଲ୍ଲଭ ହଜି ଯାଇ ନ ଥିଲେ । ଆଜିକି ପଚାଶ ଷାଠିଏ ବର୍ଷ ତଳେ ସବୁକଥାରେ ଲୋକେ କୁହାକୁହି ହେଉଥିଲେ, ଏ ବିଷୟରେ ଆର୍ତ୍ତବାବୁ କ'ଣ କହୁଛନ୍ତି ? ଆର୍ତ୍ତବାବୁ ଥିଲେ ଏ ଦେଶ ଦୁନିଆର ମୁରବି । ଗାଁ ଗଣ୍ଡାର ଅନେକ ଲୋକ ତାଙ୍କ ପାଖକୁ ଆସୁଥିଲେ । ଆସି ନ ପାରିଲେ ଚିଠି ଲେଖୁଥିଲେ ସେମାନଙ୍କ ପାଖରେ ଦେଖା ଦେଇଥିବା ସମସ୍ୟାର ସମାଧାନ ଜାଣିବାକୁ । ସେ ବି ସଭିଙ୍କୁ ନିଜର କରିଥିଲେ । ଓଡ଼ିଶାର ବହୁ ଅଞ୍ଚଳର ଲୋକ ତାଙ୍କୁ ଆପଣାର ଘରର ଲୋକ ବୋଲି ଭାବୁଥିଲେ । ଉପଦେଶ ଲୋଡୁଥିଲେ । ବନ୍ୟା ବିତ୍ପାତରେ ଲୋକଙ୍କ ଦୁଃଖ ଦୂର କରିବାକୁ ସେ ପୋଥିପାଠ ଛାଡ଼ି ସେମାନଙ୍କ ମେଳରେ ପହଞ୍ଚି ଯାଉଥିଲେ ।

ଅବିଭକ୍ତ କଟକ ଜିଲ୍ଲାର ନାଗଣପୁର ଗାଁରେ ଜନ୍ମ ହୋଇଥିଲେ ଆର୍ତ୍ତବଲ୍ଲଭ । ୧୮୮୭ ମସିହା । ଶ୍ରାବଣ ମାସର ଶୁକ୍ଳ ଏକାଦଶୀ । ଏହି ଏକାଦଶୀକୁ ପୁତ୍ରଦା

ଏକାଦଶୀ କୁହାଯାଏ । ସେଦିନ ଲକ୍ଷ୍ମୀନାରାୟଣ ବ୍ରତ ମଧ୍ୟ କରାଯାଏ । ଏକ କରଣ ଜମିଦାର ବଂଶରେ ବିଷ୍ଣୁଙ୍କ ପୂଜା ଦିବସରେ ଜନ୍ମଲାଭ କରିଥିବା ଯୋଗୁଁ ବୈଷ୍ଣବ ଭାବରେ ସେ ଜୀବନ ବିତାଇଥିଲେ ।

ପାଞ୍ଚବର୍ଷ ବୟସ ବେଳେ କଟକରେ ରହିଲେ । କନିକା କୋଠିରେ ତାଙ୍କର ବିଦ୍ୟାରମ୍ଭ । ରୋମାନ୍ କାଥଲିକ୍ ସ୍କୁଲରେ ମାଇନର ପଢ଼ିଲେ । ମିଶନ ହାଇସ୍କୁଲ–ଏବକାର କ୍ରାଏଷ୍ଟ କଲେଜିଏଟ୍ ସ୍କୁଲରୁ ମାଟ୍ରିକ ପାଶ କରି ଆଇ.ଏ. ପଢ଼ିବାକୁ ଗଲେ କଲିକତା । ସେଠାରେ ଲଣ୍ଡନ ମିଶନ ସୋସାଇଟିରୁ ଆଇ.ଏ. ପାଶ୍ କଲେ । ୧୯୧୨ ଖ୍ରୀଷ୍ଟାବ୍ଦରେ ବି.ଏ. ପାଶ କଲେ । ସଂସ୍କୃତରେ ଅନର୍ସ ନେଇଥିଲେ । ତା'ପରେ ପାଟନା ଗଲେ ଇଂରାଜୀରେ ଏମ୍. ଏ. ପଢ଼ି ପାଶ କଲେ । ୧୯୧୪ରେ କଟକ ଫେରି ରେଭେନ୍‌ସା କଲେଜରେ ସଂସ୍କୃତ ଅଧ୍ୟାପକ ଭାବେ ଯୋଗଦେଲେ ।

ଆର୍ତ୍ତବଲ୍ଲଭ ଏମ.ଏ. ପଢ଼ାବେଳେ ୧୯୧୩ ଖ୍ରୀଷ୍ଟାବ୍ଦରେ ବଙ୍ଗଳାରେ ରବୀନ୍ଦ୍ର ନାଥ ନୋବେଲ ପ୍ରାଇଜ ପାଇଲେ । ଏହାଦ୍ୱାରା ଭାରତରେ ବଙ୍ଗଳା ଭାଷା ଓ ସାହିତ୍ୟର ଗୌରବ ବଢ଼ିଲା । ଉଚ୍ଚଶିକ୍ଷିତ ଓଡ଼ିଆ ଯୁବକମାନେ ଓଡ଼ିଆ ସାହିତ୍ୟ ଯେ ବଙ୍ଗଳା ସହିତ ପ୍ରତିଯୋଗିତା କରିପାରିବ, ଏପରି କଥା ଭାବି ପାରିଲେ ନାହିଁ । ଆଧୁନିକ ଓଡ଼ିଆ ସାହିତ୍ୟ ବଙ୍ଗଳାର ସମକକ୍ଷ ହୋଇ ନ ପାରେ । ମାତ୍ର ଓଡ଼ିଶାର ପୁରାତନ ସାହିତ୍ୟକୁ ଲୋକଙ୍କ ଆଗରେ ପରଶି ପାରିଲେ ତାହା ଓଡ଼ିଆ ଭାଷାର ସମ୍ମାନ ବଢ଼ାଇବ —ଏହି ଭାବନା ସେତେବେଳକାର ଶିକ୍ଷିତ କଲେଜ ଛାତ୍ରମାନଙ୍କ ମନକୁ ଛୁଇଁଲା । ଆର୍ତ୍ତବଲ୍ଲଭ ଓଡ଼ିଶାର ପ୍ରାଚୀନ ସାହିତ୍ୟ ଓ ଇତିହାସ ସମ୍ପର୍କରେ ଅନେକ ତଥ୍ୟ ସଂଗ୍ରହ କରିଥିଲେ । ତାହାଙ୍କ ସହିତ ଇତିହାସରେ ଏମ.ଏ. ପଢୁଥିବା କୃପାସିନ୍ଧୁ ମିଶ୍ରଙ୍କୁ ଇତିହାସ ଲେଖିବାପାଇଁ ଉତ୍ସାହିତ କଲେ । ନିଜେ ସଂଗ୍ରହ କରିଥିବା ଉପାଦାନ ତାଙ୍କୁ ଯୋଗାଇଦେଲେ । ନିଜେ ପ୍ରାଚୀନ ଓଡ଼ିଆ ସାହିତ୍ୟ ଚର୍ଚ୍ଚା କରିବାପାଇଁ ପଣ କଲେ ।

ରେଭେନ୍‌ସା କଲେଜରେ ଯୋଗଦେବା ବର୍ଷ ପ୍ରଥମ ବିଶ୍ୱଯୁଦ୍ଧ ଲାଗିଲା । କେବଳ ଓଡିଶା କାହିଁକି ସାରା ଭାରତବର୍ଷ ଯୁଦ୍ଧର ବିଭୀଷିକାରେ ସନ୍ତ୍ରସ୍ତ ହୋଇପଡିଲା ।

ପିଲାଟି ଦିନରୁ ଆର୍ତ୍ତବଲ୍ଲଭ ଥିଲେ ଖେଳୁଆଡ଼ । ଫୁଟବଲ, କ୍ରିକେଟ, ଟେନିସ୍ ଆଦି ବିଭିନ୍ନ ଖେଳରେ ସେ ଥିଲେ ପାରଙ୍ଗମ । ଖେଳୁଆଡ଼ ମନୋଭାବ ଧରି ଯୁବ ଅଧ୍ୟାପକ ଆର୍ତ୍ତବଲ୍ଲଭ ଅଧ୍ୟାପନା ସହିତ ଦେଶବାସୀଙ୍କ ସେବା କରିବାରେ ମନପ୍ରାଣ

ଢାଳିଦେଲେ । ଇଂରାଜୀ ଅଧ୍ୟାପକ ଓ ଅଧ୍ୟକ୍ଷଙ୍କ ମେଳରେ ଦିନ କାଟିଲେ ସୁଦ୍ଧା ଓଡ଼ିଆର ସ୍ୱାଭିମାନ ସେ ବଜାୟ ରଖୁଥିଲେ ।

୧୯୨୪ ମସିହା । ଆର୍ତ୍ତବଲ୍ଲଭ ସ୍ୱପ୍ନରେ ଆଦେଶ ପାଇଲେ– ଠାକୁରେ କହୁଛନ୍ତି, ତାଳପତ୍ର ପୋଥିସବୁ କୀଟଙ୍କ ମୁହଁରୁ ଉଦ୍ଧାର କରି ଛାପି ଦେ । ଧର୍ମ କାର୍ଯ୍ୟହେବ । ଲୋକେ ସେସବୁ ପଢ଼ିବା ସୁଯୋଗ ପାଇ ଧର୍ମ ମାର୍ଗ ଆଚରଣ କରିବେ । ଏହି ସ୍ୱପ୍ନ ତାଙ୍କୁ ପୁରାତନ ସାହିତ୍ୟ ପ୍ରକାଶ ପାଇଁ ପ୍ରେରଣା ଦେଲା । ଲୁପ୍ତ ରତ୍ନର ଉଦ୍ଧାର ନିମନ୍ତେ ସେ ଯତ୍ନଶୀଳ ହେଲେ ।

ରେଭେନ୍‌ସା କଲେଜ ପୂର୍ବ ଛାତ୍ରାବାସର ସୁପରିଣ୍ଟେଣ୍ଡେଣ୍ଟ ଥିବାରୁ ସେ ଉପର ମହଲାରେ ରହୁଥିଲେ । ତଳ ମହଲାରେ ସହକାରୀ ସୁପରିଣ୍ଟେଣ୍ଡେଣ୍ଟ ଅଧ୍ୟାପକ ଗୁରୁଚରଣ ମହାନ୍ତି ରହିଥିଲେ । ରସାୟନ ଶାସ୍ତ୍ରର ଅଧ୍ୟାପକ ହେଲେ ବି ଗୁରୁଚରଣଙ୍କର ପ୍ରାଚୀନ ଓଡ଼ିଆ ସାହିତ୍ୟ ପ୍ରତି ଆଦର ଥିଲେ । ସେ 'ବିଦ୍‌ଗଧ ଚିନ୍ତାମଣି'ର ଛାନ୍ଦ ଉଚ୍ଚସ୍ୱରରେ ଗାନ କରୁଥିବା ଆର୍ତ୍ତବଲ୍ଲଭଙ୍କ କାନରେ ବାଜିଲା । ତାଙ୍କ ପାଖକୁ ଯାଇ ଆର୍ତ୍ତବଲ୍ଲଭ ପଚ୍ଚରିଲେ, "ଆରେ ଖାଲି ବୋଲିଯାଉଛୁ ନା କିଛି ବୁଝୁଛୁ ?"

ଏଇ ବୁଝିବା ଆଉ ବୁଝାଇବା କଥାଟା କହିବା ପରି ସେତେ ସହଜ ନୁହେଁ । ତେଣୁ ଉଭୟଙ୍କ ଭିତରେ କେତେ ସମୟ ଧରି ଆଲୋଚନା ଚ୍ଚଲିଲା । ସେଇଥିରୁ ବିଚ୍ଚର ପଡ଼ିଲା, କେମିତି ପ୍ରାଚୀନ ସାହିତ୍ୟର ଉଦ୍ଧାର କରାଯିବ । ଲୋକଙ୍କ ପାଇଁ ଟୀକା ଟିପ୍ପଣୀ ଦିଆଯାଇ ସେଗୁଡ଼ିକ ଛପାଯିବ । ଏହି ଅସାଧ୍ୟ କାମକୁ ସାଧ୍ୟ କରିବାପାଇଁ ଚେଷ୍ଟା ଚ୍ଚଲିଲା । ଫଳରେ 'ବିଦ୍‌ଗଧ ଚିନ୍ତାମଣି'ର ଶୁଦ୍ଧପାଠ ସହିତ ଭୀମଭୋଇଙ୍କ 'ସ୍ତୁତି ଚିନ୍ତାମଣି' ଓ ଦେବଦୁର୍ଲ୍ଲଭ ଦାସଙ୍କ 'ରହସ୍ୟ ମଞ୍ଜରୀ' ୧୯୨୫ରେ ପ୍ରକାଶ ପାଇଲା । ୧୯୨୬ରେ ମୁଦ୍ରିତ ହେଲା ଭୀମଭୋଇଙ୍କ ଭଜନମାଳା ପ୍ରଥମ ଶତକ ।

ବଙ୍ଗୀୟ ସମାଲୋଚକ ବିଜୟ ଚନ୍ଦ୍ର ମଜୁମଦାର ଓ ମନମୋହନ ଚକ୍ରବର୍ତ୍ତୀ ଉତ୍କଳର ଶ୍ରେଷ୍ଠକବି କବି ସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ରଚନାରେ ଦୋଷ ଦର୍ଶାଇଥିଲେ । ଉପେନ୍ଦ୍ରଭଞ୍ଜଙ୍କର ଭୂଗୋଳ ଜ୍ଞାନ ନ ଥିଲା । ସେ ସମୁଦ୍ର ଦେଖି ନ ଥିଲେ । ତାହାଙ୍କ ରଚନାରେ ବ୍ୟାକରଣଗତ ଦୋଷ ଅଛି । ଏହିପରି କୁତ୍ସିତ ସମାଲୋଚନା ବିରୁଦ୍ଧରେ ଗର୍ଜ୍ଜି ଉଠିଲା ଆର୍ତ୍ତବଲ୍ଲଭଙ୍କ ବଜ୍ର ଲେଖନୀ । "ଆମ୍ଭେମାନେ ଦୃଢ଼ ଭାବରେ କହିପାରୁ ଯେ ବିଜୟ ଚନ୍ଦ୍ର ଓ ମନମୋହନଙ୍କର ସଂସ୍କୃତ ସାହିତ୍ୟରେ ପ୍ରକୃତ ଅଭିଜ୍ଞତା ଥିଲେ

ଓ ସେମାନେ ଉପେନ୍ଦ୍ରଙ୍କ କାବ୍ୟମାନ ଅଭିନିବେଶ ସହ ଯଥାଯଥ ପାଠ କରିଥିଲେ ସେମାନଙ୍କ ସ୍ୱର ନିଶ୍ଚୟ ଅନ୍ୟ ରୀତି ଧାରଣ କରିଥାନ୍ତା । ସମୟ ସମୟରେ ବିଦ୍ୱେଷ ମଧ୍ୟ ଗୁଣୀଙ୍କ ଗୁଣ ସ୍ୱୀକାର କରେ ନାହିଁ । ଯଦ୍ୟପି କୌଣସି ବଙ୍ଗୀୟ କବି ଉପେନ୍ଦ୍ରଙ୍କ ଷୋଡ଼ଶାଂଶରୁ ଏକ ଅଂଶର ଅଧିକାରୀ ହୋଇ ଉତ୍କୀୟ ରୀତିରେ କାବ୍ୟ ପ୍ରଣୟନ କରିଥାନ୍ତେ, ତେବେ ସମ୍ଭବତଃ ଭାରତ ଆକାଶ ପ୍ରଶଂସାର ଅତ୍ୟୁତ୍ତୁଙ୍ଗ ଧ୍ୱନିରେ ସହସ୍ରଧା ବିଦୀର୍ଣ୍ଣ ହୋଇଥାଆନ୍ତା '' । ଏହି ଉକ୍ତିରୁ ଆର୍ତ୍ତବଲ୍ଲଭଙ୍କ ଜାତୀୟତାବାଦର ପରିଚୟ ମିଳେ ।

ସେହିପରି ଅନ୍ୟ ଏକ ଘଟଣା । ବଙ୍ଗ ସାହିତ୍ୟ ସମ୍ମେଳନର ଅଧିବେଶନ କଟକଠାରେ ହେଉଥାଏ । ବକ୍ତା ଜଣେ ଶ୍ରୀଚୈତନ୍ୟଙ୍କ ଉଦ୍ଦେଶ୍ୟରେ ଗାଇଲେ ''ବଙ୍ଗଲାର ଚନ୍ଦ୍ର ଉଦିଲି ସେ ଦିନ୍ ଉଡ଼ିଷ୍ୟାର ଆକାଶରେ ।'' ପ୍ରତିବାଦ କରି ଉଠିଲେ ଅଧ୍ୟାପକ ଆର୍ତ୍ତବଲ୍ଲଭ । ବନ୍ଦ କର ଏ ମିଥ୍ୟା ଭାଷଣ । ବରଂ କହ ଉଡ଼ିଷ୍ୟାର ଚନ୍ଦ୍ର ଉଦିଲେ ସେଦିନ ବାଙ୍ଗଲାର ଆକାଶରେ । ଏହାର ତାତ୍ପର୍ଯ୍ୟ ହେଉଛି ଶ୍ରୀଚୈତନ୍ୟଙ୍କ ପିତା ଜଗନ୍ନାଥ ମିଶ୍ର ଯାଜପୁରରୁ ଯାଇ ନବଦ୍ୱୀପରେ ଥିଲାବେଳେ ଶ୍ରୀ ଚୈତନ୍ୟଙ୍କର ନଦିଆରେ ଜନ୍ମ ହୋଇଥିଲା । ଓଡ଼ିଆ ପିଲା ବଙ୍ଗଳାରେ ଜନ୍ମିଲେ କ'ଣ ବଙ୍ଗାଳୀ ହୋଇଯିବ ? ବିଷ୍ଣୁଭକ୍ତ ଆର୍ତ୍ତବଲ୍ଲଭ ଶ୍ରୀଚୈତନ୍ୟଙ୍କ ଜାତୀୟତା ସଂପର୍କରେ ମିଥ୍ୟା ବର୍ଣ୍ଣନାକୁ ସହ୍ୟ କରନ୍ତେ କିପରି ?

ଓଡ଼ିଶାରୁ ଖରସୁଆଁ ଓ ଷଢ଼େଇକଳାକୁ ନେଇ ବିହାର ସଙ୍ଗେ ମିଶାଇ ଦିଆଗଲା । ସାରା ଓଡ଼ିଶାରୁ ପ୍ରତିବାଦର ସ୍ୱର ଉଠିଲା । ପୁରୀରେ ବେଙ୍ଗପାଣିଆ, କଟକରେ ସୁନୀଲ ଓ ଯାଜପୁରରେ ଗିୟାସୁଦ୍ଦିନ ଗୁଳି ଗ୍ରେଟରେ ପ୍ରାଣ ଦେଇ ଶହିଦ ହେଲେ । କଟକର ଶୋଭାଯାତ୍ରାରେ ଯୋଗ ଦେଇଥିଲେ ଆର୍ତ୍ତବଲ୍ଲଭ । ପୋଲିସର ମାତ୍ରାଧିକ ବଳ ପ୍ରୟୋଗରେ ଅତିଷ୍ଠ ହୋଇ ତାଙ୍କର ଅନ୍ୟତମ ଛାତ୍ର ସେ ସମୟର ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ ଆଗରେ ପ୍ରତିବାଦ କଲେ । 'ମୋର ପିଲାମାନଙ୍କୁ ମାରିଦେଉଛ' ବୋଲି ତିରସ୍କାର କଲେ । ତାଙ୍କର ଦୃଢ଼ ପ୍ରତିବାଦ ଯୋଗୁଁ ସରକାରୀ କଡ଼ା ନିର୍ଦ୍ଦେଶ କୋହଳ ହେଲା । କ୍ରମେ କ୍ରମେ ଆନ୍ଦୋଳନ ଶାନ୍ତ ହେଲା ।

ଏ ଦେଶ ଓ ଜାତି ପାଇଁ ଆର୍ତ୍ତବଲ୍ଲଭଙ୍କର ଥିଲା ଗଭୀର ମମତା । ତାଙ୍କର ଉତ୍କଳୀୟତା ଥିଲା ଉଗ୍ର । କଲେଜରେ ଇଂରେଜମାନଙ୍କ ମେଳରେ ରହିଲେ ମଧ୍ୟ ସର୍ବଦା ଉତ୍କଳୀୟ ବେଶଭୂଷା ପରିଧାନ ଏ ଉତ୍କଳୀୟ ସଂସ୍କୃତି ପ୍ରୀତି ପ୍ରଦର୍ଶନ କରୁଥିଲେ । ଇଂରେଜମାନଙ୍କ ରାଜୁତି କାଳରେ ଲୋକେ ଇଂରେଜମାନଙ୍କର ମନ

ନେବାକୁ ସେମାନଙ୍କୁ ଅନୁକରଣ କରୁଥିବାବେଳେ ଜଣେ ଉଚ୍ଚଶିକ୍ଷିତ ଓ ସରକାରୀ କର୍ମଚାରୀ ହୋଇ ସୁଦ୍ଧା ଆର୍ତ୍ତବଲ୍ଲଭଙ୍କ ଏହି ଜାତୀୟତା ପ୍ରୀତି କିଛି କମ୍ ସାହସ କଥା ନ ଥିଲା ।

ଥରେ ଏକ ସଂଧ୍ୟାରେ ଇଷ୍ଟହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟଙ୍କ ପାଖରେ ଉପସ୍ଥିତ ହେଲେ ଜଣେ ମହିମାଧର୍ମୀ ସାଧୁ । ହାତରେ ତାଙ୍କର ଭୀମଭୋଇଙ୍କ ରଚିତ ତାଳପତ୍ର ଖେଦାଟିଏ । "ମହାଶୟ, ଏ ଗ୍ରନ୍ଥକୁ ଆଜି ରାତିରେ ଦେଖି ସକାଳୁ ମତେ ଦେଇଦେବେ"—କଥା ରଖିବାକୁ ହେବ । ଗ୍ରନ୍ଥଟିର ନକଲ ପାଇଁ ବେଳ କାହିଁ ? ଚିନ୍ତିତ ହେଲେ ଘଡ଼ିଏ ଆର୍ତ୍ତବଲ୍ଲଭ । ଚାଲିଲେ ଅନ୍ତେବାସୀମାନଙ୍କ ପାଖକୁ । ଗୋଟିଏ ଗୋଟିଏ ପତ୍ର ନେଇ ସମସ୍ତେ ଲେଖି ପକାଅ । ଲେଖା ହୋଇ ସାରଙ୍କ ପାଖେ ଜମା ହେଲା । ଏକାଠି କରିଦେଲେ । ଗ୍ରନ୍ଥଟି ଏଥିରେ ଗ୍ରଥିତ । ସକାଳ ହେବାରୁ ସାଧୁ ମହାରାଜ ଆସି ପୋଥି ନେବାକୁ ଚାହିଁଲେ । ହାତକୁ ତାଙ୍କର ବଢ଼ାଇଦେଲେ ପ୍ରଫେସର ମହାନ୍ତି । ଏହିପରି ଗ୍ରନ୍ଥର ନକଲ କରିବା ଓ ତା' ସଙ୍ଗେ ସଙ୍ଗେ ପିଲାମାନଙ୍କୁ ତହିଁରେ ଆଗ୍ରହୀ କରିବା କାମଟି ଏକାବେଳେକେ ହୋଇଗଲା ।

ଖୋଜା ପଡିଲା ଲାବଣ୍ୟବତୀର ପୋଥି ସମ୍ପାଦନା ପାଇଁ । ଯେତେ ଯେଉଁଠି ପରିଚିତ ଅପରିଚିତ ଜାଣିବା ଶୁଣିବା ଲୋକଙ୍କୁ ଲେଖାଗଲା ଚିଠି । ଉତ୍ତରରେ ଲକ୍ଷ୍ମୀନାରାୟଣ ପଟ୍ଟନାୟକ, ବିଜୁ ପଟ୍ଟନାୟକଙ୍କ ପିତା, ଗଞ୍ଜାମର ବିଭିନ୍ନ ସ୍ଥାନରୁ ଓ ଘୁମୁସରରୁ ଆଣି ପହଞ୍ଚାଇଲେ ଚାରିଖଣ୍ଡ ପୋଥି । କଟକ, ପୁରୀ ଓ ଗଡ଼ଜାତ ଅଞ୍ଚଳରୁ ପାଇଲେ ପାଞ୍ଚଖଣ୍ଡ ପୋଥି । ସିଂହଳର ଜଣେ ଉଚ୍ଚ କର୍ମଚାରୀ ସାହେବ 'କିଂ' ଚିତ୍ରିତ ଛାପା ଲାବଣ୍ୟବତୀର ଚାରିଗୋଟି ଖେଦା ପଠାଇଲେ । ରେଭେନ୍‌ସା କଲେଜ ମିଉଜିଅମରୁ ପାଇଲେ ଦୁଇଖଣ୍ଡ ପୋଥି । ଏପରି ବାରଟି ଗ୍ରନ୍ଥ ଓ ଖଣ୍ଡିଏ ଛାପା ଲାବଣ୍ୟବତୀ ବହି ମିଳାଇ ଶୁଦ୍ଧି ପାଠ ପ୍ରସ୍ତୁତ କଲେ । ଏହିପରି ଖଣ୍ଡିଏ ଖଣ୍ଡିଏ ପୋଥିର ସମ୍ପାଦନା ପାଇଁ ପୋଥି ଖୋଜା, ପୋଥି ମିଳା ଆଦି ସବୁ କାର୍ଯ୍ୟ କରିବାକୁ ପଡ଼େ ।

ପ୍ରାଚୀନ କବିମାନଙ୍କର କାଳ ନିରୂପଣ କରିବା ବଡ଼ କଷ୍ଟକର କଥା । ଆଜି, ଏବେ ଯେମିତି ସହଜରେ କବିମାନଙ୍କୁ କିଏ କେଉଁ ସମୟରେ ଜନ୍ମିଲେ କିମ୍ବା ମଲେ ଲେଖା ରହୁଛି, ଆଗେ ସେପରି କିଛି ନ ଥିଲା । ବେଳେ ବେଳେ ଜଣେ ରାଜାଙ୍କ ଅଙ୍କ ଭଣତିରେ କବି ଲେଖୁଥିଲେ ସିନା, ମାତ୍ର ସବୁ କବି ସେପରି କରୁ ନ ଥିଲେ । ତେଣୁ ସେହି ଅନ୍ଧାର ଭିତରେ ଉଣ୍ଡାଳିବା କଥା । କେଉଁ କବିଙ୍କ ଭାଷା କିପରି, କାହାର ଲେଖା ଶୈଳୀ କିପରି ଏସବୁ ଠଉରେଇବାକୁ ପଡ଼େ । ଶବ୍ଦ ସବୁ

ଦେଖି ତାର ଅର୍ଥ ଖୋଜିବାବେଳେ କିଏ କେଉଁଠି ବ୍ୟବହାର କରିଛନ୍ତି ତଉଲିବାକୁ ହୁଏ । ରାଗ ରାଗିଣୀ ଧରି ମଧ୍ୟ କବିମାନଙ୍କ ଆଗପଛ ସମୟ ଧରାଯାଏ । ଏହିପରି ବହୁତ ଖୋଜାଖୋଜି ସନ୍ଧାନ ଅନୁସନ୍ଧାନ ଭିତରେ କବିମାନଙ୍କର କାଳ ନିରୂପଣ କରିବା ଥିଲା ଆର୍ତ୍ତବଲ୍ଲଭଙ୍କ କାମ । ପାଞ୍ଚ ଶହ ବର୍ଷ ତଳର କବିମାନଙ୍କ ସମୟ ସଜାଇବା କିଛି କମ୍ କଥା ନୁହେଁ ।

ବହି ସବୁ ଛପାଇବା, ବିକ୍ରୟ କରିବା ସବୁ କାର୍ଯ୍ୟ ପାଇଁ ବହୁଲୋକ ସ୍ୱେଚ୍ଛାରେ ଲାଗି ପଡିଲେ । ପ୍ରାଚୀନ ପୋଥିକୁ କୀଟ ମୁହଁରୁ, ନଈବଢ଼ି ଓ ଘରପୋଡ଼ିରୁ ରକ୍ଷା କରିବା ହେଲା ବଡ଼ କାମ । ସେଥିପାଇଁ ଗଢ଼ାଗଲା 'ପ୍ରାଚୀ ସମିତି' । ଜାତୀୟ ସାହିତ୍ୟର ଉଦ୍ଧାର ଓ ପ୍ରକାଶ ଥିଲା ପ୍ରାଚୀ ସମିତିର ଉଦ୍ଦେଶ୍ୟ । ପ୍ରାୟ ୫୪ ଖଣ୍ଡ ପୁସ୍ତକ ଏହି ପ୍ରାଚୀ ସମିତି ତରଫରୁ ଅର୍ଥ ଅର୍ଥାନ୍ତର ଦିଆଯାଇ ପ୍ରକାଶ କରାଗଲା । ଏହି ପୁସ୍ତକ ଗୁଡ଼ିକରେ ବିରାଟ ଆକାରରେ ମୁଖବନ୍ଧ ଦିଆଗଲା । ଏଥିରେ କବି ଓ ତାଙ୍କ କବିତ୍ୱ ସଂପର୍କରେ ବହୁତ ଆଲୋଚନା ହୋଇଥାଏ । ବହୁ ପୋଥି ମିଳାଇ ଶୁଦ୍ଧ ସଂସ୍କରଣ କରାଗଲା । ପାଞ୍ଚ ସାତ ଜଣ ଏକାବେଳକେ ଖଣ୍ଡେ ଖଣ୍ଡେ ପୋଥି ଧରନ୍ତି । ତହିଁରେ ଥିବା ଶବ୍ଦଟି ପ୍ରକୃତରେ କବି ଲେଖିଥିଲେ କି ପରେ କେଉଁ ଲେଖନକାର ବସାଇଛନ୍ତି, ସେ ବିଷୟରେ ବିଚାର ହୁଏ । 'ସୁହାସିନୀ' ଶବ୍ଦରୁ 'ଭୁଆସୁଣୀ' ଆସିଛି ବା 'ମୁଦ୍ରାହାସିନୀ' ଶବ୍ଦରୁ 'ମୁଦୁସୁଲି' ଶବ୍ଦ ସୃଷ୍ଟି ହୋଇଛି, ଏପରି ଅନେକ କଥାର ଆଲୋଚନା ଚାଲେ ।

ପ୍ରାଚୀ ସମିତି ଦଶ ବର୍ଷ କାର୍ଯ୍ୟ କଲାପରେ ଭାଙ୍ଗିଗଲା । ତା' ସଙ୍ଗେ ସଙ୍ଗେ ପୁସ୍ତକ ପ୍ରକାଶନ, ବିକ୍ରୟ ଓ ପରିଚାଳନା କାର୍ଯ୍ୟ ମଧ୍ୟ ଶେଷ ହେଲା । ପରବର୍ତ୍ତୀ କାଳରେ ପ୍ରାଚୀ ସମିତି ସଂଗୃହୀତ ଛାପା ହୋଇ ନ ଥିବା ବହୁ ପୋଥି ଓ ଛାପା ବହିର ସତ୍ୱ ଆର୍ତ୍ତବଲ୍ଲଭ ଉତ୍କଳ ବିଶ୍ୱବିଦ୍ୟାଳୟକୁ ଦାନ କରିଯାଇଛନ୍ତି ।

କଟକ ଶେଖବଜାର ଘରେ ଦିନେ ପହଞ୍ଚିଲେ ଆର୍ତ୍ତବଲ୍ଲଭଙ୍କ ପ୍ରିୟ ଛାତ୍ର ଡକ୍ଟର ହରେକୃଷ୍ଣ ମହତାବ । କହିଲେ, ସାର୍ ! ଆପଣ ସାରଳା ମହାଭାରତର ଶୁଦ୍ଧ ସଂସ୍କରଣରେ ଲାଗନ୍ତୁ । ମହତାବଙ୍କ ଅନୁରୋଧ । ଏଡ଼ନ୍ତେ କିପରି ? ତାଙ୍କୁ କେତେ ଜଣ ପଣ୍ଡିତ ଏହି କାର୍ଯ୍ୟରେ ସହଯୋଗ କଲେ । ଶେଖବଜାର ଘରେ ସ୍ଥାନ ଅଭାବ ହେଲା । ଅଫିସ୍ କାମ ଚାଲିଲା ରାଷ୍ଟ୍ରଭାଷା ପ୍ରଚାର ସଭାର ହଲ୍ ଘରଟିରେ । ଓଡ଼ିଶାର ସାଂସ୍କୃତିକ ବ୍ୟାପାର ବିଭାଗ ପକ୍ଷରୁ ଏହି ପୁସ୍ତକ ପ୍ରକାଶ ପାଇଛି । ମାତ୍ର ଅନ୍ୟ ପୁସ୍ତକ ମାନଙ୍କରେ ଯେପରି ସେ ବିସ୍ତୃତ ମୁଖବନ୍ଧ ଲେଖିଲେ ଏଥିରେ ସେପରି ଲେଖିବାପାଇଁ କାଳ ତାଙ୍କୁ ଅନୁମତି ଦେଲାନାହିଁ । ସାରଳା ଦାସଙ୍କ ବ୍ୟବହୃତ କଠିନ

ଶବ୍ଦ ଓ ଅପରିଚିତ ଶବ୍ଦମାଳାର ସେ ଯେଉଁ ତାଲିକା ପ୍ରସ୍ତୁତ କରିଥିଲେ ସେଗୁଡ଼ିକ ନିମନ୍ତେ ଗୋଟିଏ ଅଭିଧାନ କରିବାକୁ ମଧ୍ୟ ତାଙ୍କର ମନରେ ଥିଲା । ସେ ସବୁ ଅଧାରେ ପଡ଼ି ରହିଲା । ମହାଭାରତର ପାଣ୍ଡବମାନେ ସ୍ୱର୍ଗାରୋହଣ ପର୍ବରେ ସ୍ୱର୍ଗାରୋହଣ କରିଥିଲେ । ଏହି ପର୍ବର ସମ୍ପାଦନା ପରେ ସେ କହିଥିଲେ, ମୋର ମଧ୍ୟ ବେଳ ଆସିଗଲା । ଶେଷକୁ ସେ କଥା ସତ ହେଲା । ୧୯୬୩ ସେପ୍ଟେମ୍ବର ୩୦ ତାରିଖରେ ପରମ ବୈଷ୍ଣବ ଆର୍ତ୍ତବଲ୍ଲଭ ଇଷ୍ଟଦେବତା ଗୋବିନ୍ଦଜୀଉଙ୍କ ନାମ ସ୍ମରଣ କରୁ କରୁ ସଜ୍ଞାନରେ ଅମରଧାମର ଯାତ୍ରୀ ହେଲେ । କଟକ ଶେଖବଜାରସ୍ଥିତ ତାହାଙ୍କ ବାସଭବନ ସମୀପବର୍ତ୍ତୀ ରାସ୍ତାକୁ ମହାନଗର ନିଗମ ଆର୍ତ୍ତବଲ୍ଲଭ ସରଣୀ ନାମିତ କରିଛନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟ ଆର୍ତ୍ତବଲ୍ଲଭ ଚେୟାର (ପ୍ରଫେସର ପଦ) ସୃଷ୍ଟି କରିଛନ୍ତି । ସ୍ମାରକୀ ବକ୍ତୃତା କରିଛନ୍ତି । ରେଭେନ୍ସା କଲେଜ ଉପାଧ୍ୟୋତ୍ତର ଓଡ଼ିଆ ସେମିନାର ଆର୍ତ୍ତବଲ୍ଲଭଙ୍କ ନାମରେ ନାମିତ । ଓଡ଼ିଶା ସରକାର ତାଙ୍କ ପ୍ରଣୀତ ପ୍ରଶାସନିକ ଶବ୍ଦକୋଷ ଓ ସାଂସ୍କୃତିକ ବ୍ୟାପାର ବିଭାଗ ତାହାଙ୍କ ସଂପାଦିତ ସାରଳା ମହାଭାରତ ପ୍ରକାଶ କରି ତାଙ୍କ ସ୍ମୃତି ଉଜ୍ଜୀବିତ ରଖିଛନ୍ତି ।

ଓଡ଼ିଆ ଉପାଧ୍ୟୋତ୍ତର ଶ୍ରେଣୀ ଖୋଲିବାରେ ସେ ଅଗ୍ରଣୀ ଭୂମିକା ନେଇଥିଲେ । ପୁଣି ଉତ୍କଳ ବିଶ୍ୱବିଦ୍ୟାଳୟରେ ସଂସ୍କୃତ ବିଭାଗ ଖୋଲିବା ବେଳେ ସେ ସକ୍ରିୟ ଭୂମିକା ଗ୍ରହଣ କଲେ । ସ୍ୱୟଂ 'ବେଦ' ଅଧ୍ୟାପନାର ଦାୟିତ୍ୱ ନେଇଥିଲେ ଅବୈତନିକ ଅଧ୍ୟାପକ ଭାବରେ ।

ଶିକ୍ଷାର ବିସ୍ତାର ପାଇଁ ତାଙ୍କର ସର୍ବଦା ଆଗ୍ରହ ଥିଲା । ତାଙ୍କରି ନେତୃତ୍ୱରେ ରାଣୀହାଟ ହାଇସ୍କୁଲ ସ୍ଥାପିତ ହେଲା । ନିଜ ଗ୍ରାମ ନାଗଣପୁର ବିଦ୍ୟାଳୟ, କୋରୁଆ ଉଚ୍ଚ ବିଦ୍ୟାଳୟ, ମାରୁଆଡ଼ି ହାଇସ୍କୁଲ, ଖ୍ରୀଷ୍ଟ କଲେଜ, ରେଭନ୍‌ସା କଲେଜ, ଶୈଳବାଳା ମହିଳା କଲେଜ ଆଦିର ପରିଚାଳନାରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ।

କଟକର ବସ୍ତି ବାସିନ୍ଦାଙ୍କ ପାଇଁ ନୈଶ ବିଦ୍ୟାଳୟ ପ୍ରତିଷ୍ଠା କରି ପ୍ରୌଢ ଶିକ୍ଷାର ପଥ ଖୋଲିଥିଲେ ।

ଉତ୍କଳ ସାହିତ୍ୟ ସମାଜର ସଭାପତି ଭାବରେ ଉତ୍କଳ ସାହିତ୍ୟର ଉନ୍ନତି ପାଇଁ ବହୁ ଯୋଜନା କରିଥିଲେ । ଓଡ଼ିଆ ସାହିତ୍ୟ ଏକାଡ଼େମି ପ୍ରତିଷ୍ଠା ପାଇଁ ସେ ବିଶେଷ ଉଦ୍ୟମ କରିଥିଲେ । ଓଡ଼ିଆ ସାହିତ୍ୟର ଏକ ଇତିହାସ ଇଂରାଜୀରେ ଲେଖି କେନ୍ଦ୍ର ସାହିତ୍ୟ ଏକାଡେମିକୁ ପଠାଇବାର ଦାୟିତ୍ୱ ତାଙ୍କର ଥିଲା । କଟକରେ ବେତାରକେନ୍ଦ୍ର ପ୍ରତିଷ୍ଠା କରିବାରେ ମଧ୍ୟ ସେ ସହାୟତା କରିଥିଲେ ଓ ବହୁଦିନ

ଧରି ଉପଦେଷ୍ଟା ମଣ୍ଡଳୀର ସଭ୍ୟ ଥାଇ ଉନ୍ନତମାନର କାର୍ଯ୍ୟକ୍ରମ ପ୍ରସାରରେ ସହଯୋଗ କରିଥିଲେ ।

ଓଡ଼ିଶାରେ ସଙ୍ଗୀତକୁ ଅଖିଳ ଭାରତୀୟ ଦରବାରରେ ପରିଚିତ କରିବାକୁ ମଧ୍ୟ ସେ ଉଦ୍ୟମ କରିଥିଲେ । ଶ୍ୟାମସୁନ୍ଦର ଧୀରଙ୍କ ପ୍ରଣୀତ "ଓଡ଼ିଶୀ ସଙ୍ଗୀତ ପଦ୍ଧତି" ନିମନ୍ତେ ଦିଗ୍‌ଦର୍ଶନ ଦେଇଥିଲେ । ତାଙ୍କରି ପ୍ରେରଣା ଯୋଗୁଁ ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀ ଉତ୍କଳ ସଙ୍ଗୀତ ସମାଜ ପ୍ରତିଷ୍ଠା କଲେ । ନିଜର କନ୍ୟା ବୀଣାପାଣିଙ୍କୁ ସଙ୍ଗୀତ ଶିକ୍ଷା ଦେଇ ଉତ୍କଳର ରକ୍ଷଣଶୀଳ ଶିକ୍ଷିତ ସମାଜ ମଧ୍ୟରେ ଗ୍ରହଣୀୟ ସୃଷ୍ଟି କରିଥିଲେ ।

ତାଙ୍କ ହାତରେ ଗଢ଼ା ତାଙ୍କ ସୁଯୋଗ୍ୟ ଭଣଜା ପଦ୍ମଶ୍ରୀ ବିନୋଦ କାନୁନ୍‌ଗୋ । ସାହିତ୍ୟିକ ପରିବେଶ ଭିତରେ ବଢ଼ିବା ଯୋଗୁଁ ବିନୋଦଙ୍କ ମନରେ ଲେଖାଲେଖି ପାଇଁ ପିପାସା ଜାଗ୍ରତ ହୋଇଥିଲା । ରାଜନୈତିକ ଜୀବନର ଘାତ ପ୍ରତିଘାତ ଭିତରେ ବଢ଼ି ପାଠଛାଡ଼ି ବିନୋଦ ବାବୁ ପାଠୁଆଙ୍କୁ ପାଠ ଶିଖାଇଲେ ଅମୂଲ୍ୟ 'ଜ୍ଞାନମଣ୍ଡଳ' ଲେଖି । ଓଡ଼ିଶାରେ ବୈଷ୍ଣବ ଧର୍ମର ଦୁଇଟି ଧାରା –ଶୁଦ୍ଧା ଭକ୍ତିବାଦ ଓ ଜ୍ଞାନମିଶ୍ରା ଭକ୍ତିବାଦ ପ୍ରଚଳିତ ଥିବା ତତ୍ତ୍ୱ ସେ 'ପ୍ରାଚୀ' ମୁଖବନ୍ଧରେ ସ୍ପଷ୍ଟ କରିଦେଲେ । ପ୍ରାଚୀନ ସାହିତ୍ୟକୁ ବିଶ୍ୱବିଦ୍ୟାଳୟ ପାଠ୍ୟକ୍ରମରେ ସ୍ଥାନିତ କରି ପ୍ରାଚୀନ ସାହିତ୍ୟ ଅଧ୍ୟୟନ ଓ ଗବେଷଣା ମାର୍ଗ ପ୍ରଦର୍ଶନ କଲେ ।

ଓଡ଼ିଶାକୁ ସେ ଭଲ ପାଉଥିଲେ । ଭଲ ପାଉଥିଲେ ଏ ଦେଶବାସୀଙ୍କୁ । ଏ ରାଜ୍ୟର ଭାଷା, ସାହିତ୍ୟ, ଓ ସଂସ୍କୃତିକୁ । ବିଭିନ୍ନ ମଠ ମନ୍ଦିର ସହିତ ସଂପୃକ୍ତ ରହି କେବଳ ଧର୍ମଚର୍ଚ୍ଚା ନୁହେଁ, ଧର୍ମାଚରଣରେ ମଧ୍ୟ ଜୀବନ ବିତାଇଛନ୍ତି । କେବଳ ଓଡ଼ିଶା ନୁହେଁ, ଭାରତର ବିଖ୍ୟାତ ବ୍ୟକ୍ତିମାନଙ୍କ ଦ୍ୱାରା ସେ ସମ୍ମାନିତ ତଥା ଆଦୃତ ହୋଇଛନ୍ତି । ତାଙ୍କର ମହନୀୟ ସେବାକାର୍ଯ୍ୟ ପାଇଁ ସେ ଏ ଜାତିର ଚିର ନମସ୍ୟ ।

